# ମାମୁ ଘର ହେଉ ଯେତେ ଦୂର



ଡକ୍ଟର ଦିଗରାଜ ବ୍ରହ୍ମା

# ମାମୁ ଘର ହେଉ
# ଯେତେ ଦୂର

ଡକ୍ଟର ଦିଗରାଜ ବ୍ରହ୍ମା

ଗଜପତି

# ମାମୁ ଘର ହେଉ ଯେତେ ଦୂର

ରଚନା
**ଡ. ଦିଗରାଜ ବ୍ରହ୍ମା**
ରୁଦ୍ରପୁର, ଛତିଆ, କଟକ

ପ୍ରଥମ ପ୍ରକାଶ - ୨୦୧୦

ପ୍ରକାଶକ
**ଗଜପତି**
ବାଇମୁଣ୍ଡି ମାର୍ଗ, ଡଗରପଡ଼ା
କଟକ-୭୫୩ ୦୦୨

ଲିପିସଜ୍ଜା
**ମା' ପ୍ରିଣ୍ଟର୍ସ**

ମୁଦ୍ରଣ
**ଜଗନ୍ନାଥ ପ୍ରୋସେସ୍**
ଡଗରପଡ଼ା, କଟକ-୭୫୩ ୦୦୨

**ମୂଲ୍ୟ : ଟ. ୩୦.୦୦**

# ମାମୁଘର ହେଉ ଯେତେଦୂର ସଂପର୍କରେ ପଦେ...

ଶିଶୁ ସାହିତ୍ୟ ସଂପର୍କରେ ଗବେଷଣା କଲାବେଳେ ଅନୁଧ୍ୟାନରୁ ଜାଣିଲି ଯେ ଆମ ରାଜ୍ୟର ୫ ବର୍ଷରୁ ୮ ବର୍ଷ ବୟସର ପିଲମାନଙ୍କପାଇଁ ଖୁବ୍ କମ୍ ଶିଶୁ ଉପଯୋଗୀ କବିତା ପୁସ୍ତକ ଅଛି । ତା'ର ଅଭାବ ପରିପୂରଣ ଦିଗରେ ମୁଁ ଯତ୍ନବାନ୍ ହେଲି ଓ ଏହି ବୟସର ପିଲାମାନଙ୍କପାଇଁ କବିତା ରଚନାରେ ମନ ଦେଲି ।

ଏଥିରେ ସ୍ଥାନ ପାଇଥିବା କବିତାଗୁଡ଼ିକ ମଧ୍ୟରୁ ଅଧିକାଂଶ ପୂର୍ବରୁ ସୁନାପିଲା, କାଳିଆସୁନା, ଶିଶୁଲେଖା ଆଦି ପତ୍ରିକାରେ ପ୍ରକାଶିତ ହୋଇଛି । ପ୍ରକାଶିତ ଲେଖାଗୁଡ଼ିକ ସଂପର୍କରେ ମଧ୍ୟ ମୁଁ ଉଭୟ ଶିଶୁ ଓ ସେମାନଙ୍କ ଅଭିଭାବକମାନଙ୍କଠାରୁ ଅନୁକୂଳ ମତାମତ ପାଇଛି । ଏହି ଅବସରରେ ମୁଁ ସେମାନଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

ସଂପ୍ରତି ଶିଶୁ କବିତା ପୁସ୍ତକ ପ୍ରକାଶ କରିବାକୁ ପ୍ରକାଶକ ବନ୍ଧୁଗଣ ବିଶେଷ ଆଗ୍ରହ ପ୍ରକାଶ କରୁ ନାହାନ୍ତି । ସେମାନଙ୍କର ଅଭିଯୋଗ ଯେ କବିତା ପୁସ୍ତକ ବିଶେଷ ଭାବରେ ଶିଶୁମାନଙ୍କ ଦ୍ୱାରା ଆଦୃତ ହେଉ ନାହିଁ ।

ଏକଥା ସତ ଯେ ପିଲାମାନେ ଭଲ କବିତା ବହିଟିଏ ଆନନ୍ଦରେ ପଢ଼ନ୍ତି । କବିତାର କଉତୁକିଆ ପଦ ମାଧ୍ୟମରେ ସେମାନଙ୍କର ସାହିତ୍ୟ ପ୍ରତି ଅନୁରାଗ ବଢ଼େ ଓ ସେମାନଙ୍କର ଭାଷା ଓ ସାହିତ୍ୟର ଉପଯୁକ୍ତ ଭିତ୍ତିଭୂମି ପଡ଼େ । ତେଣୁ ଅଭିଭାବକ ବନ୍ଧୁଗଣ ପିଲାଟିବେଳୁ ଶିଶୁକୁ ଶିଶୁ ଉପଯୋଗୀ କବିତା ବହିମାନ ଦେଲେ, ସେମାନେ ସାହିତ୍ୟ କ୍ଷେତ୍ରରେ ଉପଯୁକ୍ତ ସଫଳତା ହାସଲ କରିପାରିବେ ।

ଉକ୍ତ କବିତା ପୁସ୍ତକଟିକୁ ଆମୂଳଚୂଳ ପାଠକରି ଡ. ବିଚିତ୍ରାନନ୍ଦ ମହାନ୍ତି ଭାଷା ଓ ସାହିତ୍ୟ ଦୃଷ୍ଟିକୋଣରୁ ମୋତେ ଗଠନମୂଳକ ପରାମର୍ଶ ଦେଇଥିବାରୁ ମୁଁ ତାଙ୍କୁ ମୋର କୃତଜ୍ଞତା ଜଣାଉଛି

**ଲେଖକ**

# ସୂଚୀପତ୍ର





# ଚକା ଚକା ଭଉଁରୀ



ଚକା ଚକା ଭଉଁରୀ
ଗଛଟିଏ ଲଗାଇଲି
ପାଣି ଦେଲା ଗଉରୀ ।

ଚକା ଚକା ଭଉଁରୀ
ମୋ ଗଛଟି ବଢ଼ିଗଲା
ଡାଳ ତା'ର ମେଲିଦେଲା
ଫଳ, ଫୁଲେ ଭରିଗଲା
କିଏ କଲା କାଉଁରୀ

ଚକା ଚକା ଭଉଁରୀ
ପରାଣର ନାଉରୀ
ଗଛ ଆମ ଚିର ସାଥୀ
ଲଗାଇବି ଆହୁରି ।



# ଟୁଉକୁ ମୂଷି ! ଟୁକେଇ ମୂଷି !!



ଟୁଉକୁ ମୂଷି
ଟୁକେଇ ମୂଷି
ବଣ ପାହାଡ଼ର ତଳରେ ବସି
ଅଳପ, ଅଳପ ଦେଉଛି ହସି ।

ଟୁଉକୁ ମୂଷି
ଟୁକେଇ ମୂଷି
ଧାନ ଭରଣକ ଖାଉଥା' ବସି
ମନଟି ତୋହର ହୋଇବ ଖୁସି ।

ଟୁଉକୁ ମୂଷି
ଟୁକେଇ ମୂଷି
ପାଖରେ ମୂଷିର ନାହିଁ ତ ପୁଷି
ମୋ ଛବି ବହିକୁ ପଢୁଛି ହସି ।

ଟୁଉକୁ ମୂଷି
ଟୁକେଇ ମୂଷି
ଆଜି କାମ ଆଜି କରଇ ବସି
କାଲିକୁ କିଛି ତ ରଖେନା ବାସି ।

ଟୁଉକୁ ମୂଷି
ଟୁକେଇ ମୂଷି
କଳିଗୋଳ କିଏ କରିଲେ ଆସି
ଅଭିମାନେ ମୂଷି
ଯାଏ ତ ରୁଷି ।

ଟୁଉକୁ ମୂଷି
ଟୁକେଇ ମୂଷି
ନୂଆ ଦୁନିଆର ସାଥୀଟି ବୋଲି
ମନଟି ତାହାର କେତେ ଯେ ଖୁସି
ଅଳପ, ଅଳପ ଦେଉଛି ହସି ।

# ଜାତି ନନ୍ଦିଘୋଷ ଆଗେଇ ନେ

॥ ଏକ ॥

ବାଘୁଆ ନିଶ ତୋ
ଫୁଲେଇ ଦେ
ଅରାତି ସଇନେ
ଡରେଇ ଦେ ।



॥ ଦୁଇ ॥

ହାତରେ ହାତକୁ
ମିଳାଇ ଦେ
ବନ୍ଧୁତା ପାଶରେ
ବନ୍ଧେଇ ଦେ ।

॥ ତିନି ॥

ଛାତିରେ ହାତ ତୋ
ବାଡ଼େଇ ଦେ
ଦୁଃଖ, ଦଇନକୁ
ଏଡ଼େଇ ନେ ।

॥ ଚାରି ॥

ପାହୁଣ୍ଡ ପାହୁଣ୍ଡ
ବଢ଼େଇ ଦେ
ଜାତ-ନନ୍ଦିଘୋଷ
ଆଗେଇ ନେ ।



# ମାଆଙ୍କ କୋଳେ ବାବୁନ୍ ଗାଏ

ଠକ୍ ଠକ୍, ଠକ୍
ଘୋଡ଼ା ମୋ ଚାଲେ
ଆଉ କେ ଚାଲେ କାହିଁ
ଠୁକ୍, ଠୁକ୍, ଠୁକ୍
ବାବୁନ୍ ଚାଲେ
ଥକି ସେ ପଡ଼େ ନାହିଁ ।
ଝୁମ୍, ଝୁମ୍, ଝୁମ୍
ନାଚଇ ଭାଲୁ
ଆଉ କେ ନାଚୁଥାଇ
ତାକ୍ ଧିନା ଧିନ୍
ଅଜାଙ୍କ ସାଥେ
ବାବୁନ୍ ନାଚେ ଥେଇ ।
କକ୍‌ରେ କକ୍
କୁକୁଡ଼ା ଗାଏ
ଆଉ କେ ଗାଉ ଥାଇ
ମାଆଙ୍କ କୋଳେ
ବାବୁନ୍ ଗାଏ
ଗୁଡୁରୁ ଗୁଡୁ ହୋଇ ।



# ବେଲୁନ୍‌ବାଲା ! ବେଲୁନ୍‌ବାଲା !!



ବେଲୁନ୍‌ବାଲା !
ବେଲୁନ୍‌ବାଲା !!
କିଏ ସେ କାହାକୁ
କଅଣ ଦେଲା,
ମୋ ଭାଇ ମୋତେ
କଲମ ଦେଲା,
ହାତରେ ମୋଅର
କାଗଜ ଥିଲା ।

ବେଲୁନ୍‌ବାଲା !
ବେଲୁନ୍‌ବାଲା !!
କାଗଜ କଲମେ
କି କାମ କଲି !
କାଗଜରେ ଉଡ଼ାଜାହାଜ କଲି
କଲମେ ମୋ ଦେଶ ନାମ ଲେଖିଲି
ଉଡ଼ାଜାହାଜକୁ
ଉଡ଼ାଇ ଦେଲି,
ଜାହାଜ ମୋ ଗଲା ଉଡ଼ି
ସାରା ରାଇଜର ପିଲା ଖୁସି ହେଲେ
ମୋ ଦେଶର ନାମ ପଢ଼ି ।



# ହୋ-ହୋ-ହୋ  ଭୋ-ଭୋ-ଭୋ

ହୋ-ହୋ-ହୋ  ଭୋ-ଭୋ-ଭୋ
ମୋର ପୋଷା କୁକୁର
ଘର ଆମ  ଜଗେ ସିଏ
ଭାତ ମାଂସେ ଆଦର ।



ହୋ-ହୋ-ହୋ  ଭୋ-ଭୋ-ଭୋ
ମୋର ପୋଷା କୁକୁର
ଚୋର ସାଧୁ  ଜାଣିଥାଏ
ଅତି ବଡ଼ ଚତୁର ।



# କୋଇଲି ଲୋ କୋଇଲି !

କୋଇଲି ଲୋ କୋଇଲି,
ମାମୁ ଘର ଚାଲିଲି
ମାଈଁ ଦେଲେ ଖିରି ପିଠା
ଖୁସି ମନେ ଖାଇଲି ।



କୋଇଲି ଲୋ କୋଇଲି,
ମାମୁ ସାଥେ ଖେଳିଲି
ଟେକା ମାରି ଆମ୍ବ ଗଛୁଁ
ଆମ୍ବ କେତେ ତୋଳିଲି ।

କୋଇଲି ଲୋ କୋଇଲି,
ମାଉସୀକୁ କହିଲି
ମିଠାଟିଏ ନ ଦେଲେ ମୁଁ
ବୋଉ ପାଶେ ଚାଲିଲି ।

କୋଇଲି ଲୋ କୋଇଲି,
ଅଜା ପାଶେ ଶୋଇଲି
ଅଜାଙ୍କର ମଜା କଥା
କାନ ଦେଇ ଶୁଣିଲି ।

କୋଇଲି ଲୋ କୋଇଲି,
ମାମୁ ଘରୁ ଫେରିଲି
ଅଜା ଆଈ ହସ ଖୁସି
ମନେ ମନେ ଭାଳିଲି ।



# ଆ'ରେ ପବନ ଆ

ଆ'ରେ ପବନ ଆ
ଆ'ରେ  ପବନ ଆ
ମୋ ଆଖି ଛୁଇଁ, ମୋ କାନ ଛୁଇଁ
ଯା'ରେ ବହି ଯା ।
ତୁ ବହିଲେ ଗୁଡ଼ିଟି ମୋର
ଆକାଶେ ଯିବ ଉଡ଼ି,
ତୁ ବହିଲେ ମନରେ ମୋର
ଫୁଟିବ ଫୁଲ କଢ଼ି ।



ତୋ ଲାଗି ହେବି ରାଜକୁମାର
ସାହସ ଯିବ ବଢ଼ି,
ମନପବନ ଘୋଡ଼ାରେ ଯିବି
ଜହ୍ନ ରାଇଜେ ଉଡ଼ି ।

ଦେଖିବି ଯେବେ ସପନପରୀ
ଡାକିବି ସାଥେ ଆ-ଆ'ରେ ପବନ ଆ
ମୋ ଆଖି ଛୁଇଁ, ମୋ କାନ ଛୁଇଁ
ଯା'ରେ ବହି ଯା ।

ବହିଲେ ତୁହି ଗୀତଟି ମୋର
ତୋ ସୁରେ ଯିବ ମିଶି,
ବହିଲେ ତୁହି ଡଙ୍ଗାଟି ମୋର
ଯିବ ରେ ଭାସି ଭାସି ।

ତୋ ଲାଗି ଆଜି ହେବିରେ କବି
ଚଳାଇ ମୋର ମସୀ
ସେନେହ ଭରା ପରାଣ ମୋର
ଉଠିବ ସତେ ହସି ।

ଆସିଲେ ସବୁ ଭାଇ ଭଉଣୀ
ଖେଳି ଖେଳିକା ଯାଆ-
ଆ'ରେ ପବନ ଆ
ମୋ ଆଖି ଛୁଇଁ, ମୋ କାନ ଛୁଇଁ
ଯା'ରେ ବହି ଯା ।



# ଶୁଭ ନାମ ତା'ର ସବୁରି ଆଦର

ଫୁଲ ବଗିଚାରେ       ମନ ହରଷରେ
ବୁଲେ ସିଏ କିଏ କହ କି
ଏ ଫୁଲେ ସେ ଫୁଲେ   ଡେଇଁ ଡେଇଁ ବସେ
ବାସ ନିଏ ମହମହଟି ।



ଶୋଷିନିଏ ସିଏ       ଫୁଲରୁ ଫୁଲକୁ
ଯେତେ ଅଛି ସବୁ ମହୁଟି
ମହୁଠାରୁ ମିଠା       ଗୀତଟି ତାହାର
ମିଠା ପୁଣି ତା'ର ନାଆଁଟି ।

କାମଟି ତାହାର       କେତେ ଯେ ସୁନ୍ଦର
ଦେଖ ତା'ର ସେହି ଫେଣାଟି
ଅତି ଯତନରେ       ମହୁରେ ଭରିଛି
ନିଜ କାମେ ତୁହେଁ ବଣାଟି ।

ପର ଲାଗି ଯିଏ       ସାଇତେ ମହୁଟି
ତା'ର ନାମ କୁହ ବାଛିଟି
ଶୁଭ ନାମ ତା'ର       ସବୁରି ଆଦର
ସିଏ ପରା ମହୁମାଛିଟି ।



# ନିଦକ ହୋଇ ଶୋ... ଶୋ...

କୁଆ ଡାକିବ କା... କା..
ସକାଳ ହେଲେ ଶେଯ ଛାଡ଼ିବି
ସୁନା ପିଲା ମୁଁ ବାଃ... ବାଃ...

ଶୁଆ କହିବ ଆ... ଆ..
ସରଗୁଁ ବଡ଼ ଜନମଭୂଇଁ
ସେଇଟି ଆମ ମା... ମା... !



ପୁଷି ଡାକିବ ମ୍ୟାଉଁ ମ୍ୟାଉଁ
ହସି ହସିକା ଖାଇବି ବସି
ଭାତରେ କ୍ଷୀର ଗାଉଁ ଗାଉଁ ।

କୁକୁର ଡାକିବ ଭୋ... ଭୋ....
କହିବ ମୋତେ ଜଗିଛି ତୋତେ
ନିଦକ ହୋଇ ଶୋ... ଶୋ...



# ପ୍ରାଣୀ ଆମ ଘରର

ଆମ ଘର କୁକୁର
ଅଟେ ବଡ଼ ଚତୁର
ଚୋରକୁ ସେ ଧରିବାରେ
କରେ ବଡ଼ ଫିକର ।

ଆମ ଘର ବିଲେଇ
ହୁଏ ବଡ଼ ଗେହ୍ଲେଇ
ମୂଷାଟିଏ ମାରିଦେଇ
ନିଶ ଦିଏ ଫୁଲେଇ ।

ଆମ ଘର ମଇନା
ଲୋଡ଼େ ସଦା ଅଇନା
ମନେ ଭାବେ ଭାରି ବଡ଼
ତା'ପରି କେ ନାହିଁ ନା ।



ଆମ ଘର ଗାଈଟି
ରୁପା ଚାନ୍ଦ ମୁହଁଟି
ଜୁହାର ତା' ପାଦ ତଳେ
ସିଏ ଆମ ମାଆଟି ।

ଆମ ଘର ମଇଁଷି
ଦେଲେ ଟିକେ ଆଉଁଷି
ଖୁସି ମନେ ଚାହେଁ ମୋତେ
ବଜାଇଲେ ବଇଁଶୀ ।

ଆମ ଘର ନେଉଳ
ଓଧର ସେ ବଉଳ
ସାପ ସାଥେ ଲଢ଼ି ଲଢ଼ି
କରେ ତାକୁ ଘାଉଲ ।

ପ୍ରାଣୀ ଆମ ଘରର
ସଭିଏଁ ତ ଗୁଣର
ନିଜ ରୂପ ଗୁଣ ଲାଗି
କରୁ ଆମେ ଆଦର ।

# ଏଇ ଦେହର ଯତନ ନେଲେ



ଏଇଟି ମୋର ମୁଣ୍ଡରେ ଭାଇ,
ଏଇଟି ମୋର ମୁଣ୍ଡ,
ଏ ମୁଣ୍ଡ ବୁଦ୍ଧି ପାରିବ ଜାଣି
ଖୋଲିବ ଯେବେ ତୁଣ୍ଡ ।
ଏଇଟି ମୋର ଆଖିରେ ଭାଇ,
ଏଇଟି ମୋର ଆଖି,
ଏଇ ଆଖିରେ ଦେଖଇ ଯାହା
ସେଇଟି ରହେ ସାକ୍ଷୀ ।

ଏଇଟି ମୋର ପାଟିରେ ଭାଇ
ଏଇଟି ମୋର ପାଟି,
ଜିଭକୁ ଦେଖ, ଦାନ୍ତକୁ ଦେଖ,
ସଫା ତ ଗୋଟି ଗୋଟି ।
ଏଇ ଦୁଇଟି ହାତ ଯେ ମୋର
ଏଇ ଦୁଇଟି ହାତ,
ଏଇ ହାତରେ କରଇ କାମ
ଖାଏ ମୁଁ ଡାଲି ଭାତ ।
ଏଇ ଦୁଇଟି ଗୋଡ଼ ଯେ ମୋର
ଏଇ ଦୁଇଟି ଗୋଡ଼,
ଏଇ ଗୋଡ଼ରେ ଚାଲିଲେ ନିତି
ମୋ ପାଇଁ ସିଏ ବଡ଼ ।
ଏଇପରି ତ କେତେ ଭାଗରେ
ଦେହଟି ମୋର ଗଢ଼ା,
ଏଇ ଦେହର ଯତନ ନେଲେ
ହେବିନି ଆଉ ବୁଢ଼ା ।



# ମିତରେ ଗୀତ ଗାଇ ଯା

ଶୀତରେ ମୋତେ ଛୁଇଁ ଯା
ମିତରେ ଗୀତ ଗାଇ ଯା
କେଉଁ ଗୀତଟି ଗାଇବି କହ ?
ଅକାର ଗୀତ କି
ଆଇର ଗୀତ
ଅକାର ସାଥିରେ ଆଇର ଗୀତ
ଗାଇ, ଗାଇ ତୁ ନାଚି ଯା ।

ମିତରେ ଗୀତ ଗାଇ ଯା
ଶୀତରେ ମୋତେ ଛୁଇଁ ଯା ।





# ସୁନା ଦେଶର ପିଲା



ବାପା ଡାକିଲେ
ଆ'ରେ କୁନା
ପଢ଼ିବୁ ପାଠ ଆ,
ମା' କହିଲେ
ଆ'ରେ ଧନ
ଗୀତଟିଏ ତୁ ଗା' ।
ଭାଇ କହିଲେ
କେଉଁଠି ଥିଲା
ଏଡ଼େ ସୁଧାର ପିଲା,
ଭଉଣୀ କହେ
କୁନା ଆମର
ସୁନା ଦେଶର ପିଲା ।



# ଉଡ଼ାଇ ଦେଲି ଗୁଡ଼ି



॥ ଏକ ॥

ଉଡ଼ାଇ ଦେଲି ଗୁଡ଼ି
ଆକାଶ ଛୁଇଁ
ଉଡ଼ିଲା ଯେବେ
ଖୁସିରେ ଗଲି ଗଡ଼ି ।

॥ ଦୁଇ ॥

ଘୂରାଇ ଦେଲି ନଟୁ
ଘର୍‌ର ଘର୍
ଘୂରିଲା ସିଏ
ଦେଖି ନାଚିଲା ମିଟୁ ।

॥ ତିନି ॥

ବଜାଇ ଦେଲି ତୂରୀ
ଶିଶୁ ସଇନ
ଚାଲିଲେ ସବୁ
କଦମ୍ କଦମ୍ କରି ।





# ସାଇକଲଟି ତିନିଚକିଆ



ସାଇକଲଟି
ତିନିଚକିଆ
ଉପରେ ବସିଛି
କୁନୁମୁନିଆ ।
ସାଇକଲ
ଗଲା ଗଡ଼ି,
ମୋ ଭାଇ ହସରେ
ମୁକୁତାର ମାଳ
ସତେ ଅବା ଗଲା ପଡ଼ି ।
କଅଁଳ ପତର
ଛନଛନିଆ
କଅଁଳା ପିଲାଟି
କୁନୁମୁନିଆ ।
କୁନୁମୁନୁ ଦେଲା ହସି,
ହସରେ ହସରେ
କଲେ ତାଳିମାଡ଼
ସବୁ ପିଲା ହେଲେ ଖୁସି ।



# ଯାଇଥିଲି ବୁଲି ନନ୍ଦନକାନନ

ଯାଇଥିଲି ବୁଲି ନନ୍ଦନକାନନ
ଦେଖିଲି ମୁଁ ପାଣି ଭାଲୁ,
ପାଣିର ଭିତରେ ପଶିଛି କାହିଁକି
ସତେ କଣ ଏଡ଼େ ଓଲୁ !
ଓଲୁ ନୁହେଁ ବୋଲି କହିଲା ଭାଲୁଟି
ମୋ ଟାହି ଟାପରା ଶୁଣି,
ନ ଥିଲେ ଆମେ ତ ପିଲାଏ କିପରି
ଆନନ୍ଦ ପାଇବେ ପୁଣି ।
ବାଘ, ସିଂହଙ୍କର ଗରଜନ ଶୁଣି
ଚମକି ଚାହିଁଲି ପଛେ,
ବାଘ ମାମୁଁ କହେ ଡରୁଛ କାହିଁକି
ସିଂହ ଗରଜଇ ମିଛେ ।
ଜାତୀୟ ପଶୁ ମୁଁ ହୋଇଗଲି ବୋଲି
ଦେଖୁଛ ସିଂହର ରାଗ,
ତୁଚ୍ଛା ରାଗଟାରେ ରହିଛି କି ମୂଲ
ଡରିଛି କି ତାକୁ ବାଘ ।

ବାଘ ମାମୁ ପାଶୁ　　ମେଲାଣି ଘେନି ମୁଁ
ଆସିଲି ମୟୂର ପାଶେ,
ଟୋଳି ତା'ର ପୁଚ୍ଛ　　ଢଳି, ଢଳି ସିଏ
ନାଚୁଥିଲା ମନ ସୁଖେ ।
ଜାତୀୟ ପକ୍ଷୀର　　ଗଉରବ ତା'ର
ଦେହେ ମନେ ଥିଲା ଭରି,
କହିଲି ମୟୂର　　ତୋ ମାନ ମହତେ
ଆଉ କିଏ ହେବ ସରି ?

ପଶୁ, ପକ୍ଷୀ ସବୁ　　ଦେଖୁ ଦେଖୁ ପରା
ସରି ଆସିଥିଲା ଦିନ,
ନନ୍ଦନ କାନନ　　ମନରେ ମୋହର
ରହିଗଲା ଚିରଦିନ ।





# ମୋ ସାଥୀ ହେବା ପାଇଁ

ମୂଷା ଭାଇରେ ! ମୂଷା ଭାଇରେ !
କହିବୁ ଗୋଟେ କଥା,
''କି କଥା ତୋତେ କହିବି କହ
ଘୂରୁଛି ମୋର ମଥା ।''





ବିଲୁଆ ନନା ! ବିଲୁଆ ନନା !
ମୋ ଆଡ଼େ ଟିକେ ଚାହାଁ,
''ଘର ମୋ ସାଡ଼େ ଯାଉଛି ପୋଡ଼ି
କେହି ମୋ ନାହିଁ ସାହା ।''



ବିଲେଇ ନାନୀ ! ବିଲେଇ ନାନୀ !
ଡାକୁଛି ତୋତେ କୁନି,
''ନାହିଁ ମୋ ବେଳ ଶୁଣିବି ଡାକ
ଉଡୁଛି ମୋର କାନି ।''



କୋଇଲି ରାଣୀ ! କୋଇଲି ରାଣୀ !
ଗାଇବୁ ଗୀତଟିଏ,
''କି ଗୀତ ମୁହିଁ ଗାଇବି କହ
ଶୁଣିବ ତାକୁ କିଏ ?''

ନ ଶୁଣ ଡାକ ନ ଗାଅ ଗୀତ
ନ ଆସ ପାଶେ କେହି,
ତୁମରି ନାମେ ଗାଇବି ଗୀତ
ମୋ ସାଥୀ ହେବା ପାଇଁ...
ଆସିବ ଆପେ ଧାଇଁ ।



# ମାମୁଘର ହେଉ ଯେତେ ଦୂର

ପବନ ବହୁଛି ଶିରି ଶିରି
ଚକ ମୋ ଘୂରୁଛି ଘିରି ଘିରି
ମାମୁ ଘର ହେଉ ଯେତେ ଦୂର
ଯିବି ଆଜି ମୁହିଁ ଥିରି ଥିରି ।



ମାମୁ ରହିଥିବେ ବାଟ ଚାହିଁ
ମାଈଁଙ୍କ ସମାନ କେହି ନାହିଁ
ମାମୁଙ୍କ ଆଦର, ମାଈଁଙ୍କ ସେନେହ
ପାଇଁ ମନ ହୁଏ ହାଇଁ ପାଇଁ ।

ଆସରେ ପବନ, ଆସ ବହି
ମାମୁ ଘର କଥା କହି, କହି
ଶୁଣି ତୋର କଥା
ବାଟ ଚଲା ଥକା
ଯାଉ, ମୋର ଆଜି
ଦୂର ହୋଇ ।



# ଏ ଧରା ଛାଡ଼ି ଯିବ ସେ ଚାଲି

ଆମରି ଜାତି ପିତା ରେ ସିଏ

ଆମରି ଜାତି ପିତା,

ସକାଳେ ସଞ୍ଜେ ଯା' ଛବି ପାଶେ

ନୁଅଁଇ ଆମ ମଥା ।



ଦରିଆ ପାରି ବଣିକ ଯେବେ

ହୋଇଲେ ଆମ ରଜା,

ଡରିଲା ନାହିଁ ଲଢ଼ିଲା ସିଏ

ହାତେ ଅହିଂସା ଧ୍ୱଜା ।



ଗୋଟିଏ ଗାଲେ ମାରିଲେ କେହି
ଆଉ ଗାଲଟି ତା'ର,
ବିନା ଦୁଃଖରେ ଦେଖାଇ ଦିଏ
ପାରିଲେ ଆଉ ମାର ।
ତିନି ମାଙ୍କଡ଼ ଛବି ତାହାର
କହଇ ତିନି କଥା,
ଖରାପ କଥା କହିବ ନାହିଁ
କଟିଲେ କଟୁ ମଥା ।
ଖରାପ କଥା ଦେଖିବ ନାହିଁ
ଶୁଣିବ ନାହିଁ କାନେ,
ଜୀବନେ ଯେବେ ହୋଇବ ବଡ଼
ଏକଥା ରଖ ମନେ ।
କେହି ତ ଦିନେ ଭାବି ନ ଥିଲେ
ତା'ପରି ଜଣେ କେହି,
ଏ ଧରା ଛାଡ଼ି ଯିବ ସେ ଚାଲି
ଆଉ ଫେରିବ ନାହିଁ ।



# କରି ଚାଲିଲେ ନିଜ କରମ



କୁଆ ରାବିଲେ
ସକାଳ ହେଲେ
ମାଆ କହନ୍ତି ଉଠ,
ଉଠରେ ପିଲେ
ପଢ଼ିବ ପାଠ
ନ କରି ଆଉ ମଠ ।
ମଠରେ ତୁମେ
କରନା ଆଉ
ଶୁଣ କୁକୁଡ଼ା ଡାକ,
ପାହାନ୍ତା ପହରୁ
ଶୁଣିକି ନାହଁ
ମଧୁର ତା'ର ଡାକ ।
କୁକୁଡ଼ା ଡାକେ
କୁଆ ତ ଡାକେ
ଯା'ର ସମୟ ଯେବେ,
କରି ଚାଲିଲେ
ନିଜ କରମ
ହେବାରେ ବଡ଼ ଭବେ ।

